# जगन्नाथ-ताण्डव-स्तोत्रम्

# JAGANNATHA-TANDAVA-STOTRAM



Kavi-Kokilah
Prof. Gouri Kumar Brahma

Name of the book—

JAGANNATHA TANDAVA STOTRAM
(A Sanskrit poem on Lord Jagannatha)

Name of the author—

Prof. Gourikumar Brahma
प्रोफेसर् गौरीकुमार ब्रह्मा

Year — 1990 — First Edition

Publisher—

Prof. Sitikantha Mishra

Printer—

Sri Narayana Press, Puri.

**Price— Rs. 5/-**

# DEDICATION

I dedicate this poem to Prof. P. K. Patsani, D Sc., D. Litt. as a token of my profound appreciation of his dynamic personality, Oriental scholarship, poetic talents, critical contributions, oratorical performances, literary pursuits, yogic practices, dedication to the service of the mother-land, robust optimism, social reforms and above all, dissemination of knowledge, conducive to the glorification of the Cult of Lord Jagannatha all over the world as a mission of his life.

Prof. C. K. Brahma

# PREFACE

About two years ago, I wrote a few stanzas in my attempt to compose a Taandava Stotram on Lord Jagannatha and presented them to a friend of mine whose love of Sanskrit and study of Sanskrit literature impr-essed me very much in as much as, he was at that time an eminent political personality.

But, only a few days ago, I suddenly felt that I should make a fresh attempt to write a stotram on the Lord in imitation of the famous 'SIVA TANDAVA STOTRAM'.

I sat in prayer for some time, but could not write even one stanza afresh. It so happend that I concentrated on the lotus feet of Lord Jagannatha for the fulfilment of my desire and feel asleep. I saw a dream and got up. Some body told me in the dream as to how I should write. I got the clue and gave a dictation immediately. The result was the "Tandava-Stotram" that I present to my readers with my mind fixed at the lotus feet of the Lord.

Prof. G. K. Brahma
10-3-90

# जगन्नाथ-ताण्डव-स्तोत्रम्

(सुविख्यात शिवताण्ड़वस्तोत्र वृत्तेन रचितम्)
(भक्तितद्गतचित्तेन बाहुद्वय-उत्तोलनपूर्वकं नर्त्तननिमित्तम्)

**अनुच्च-नील-भूधरे समुच्च-रम्य-मन्दिरे**
**विराजते हि चत्वरे जगत्पति-विशुद्धये ।**
**अनाथ-नाथ इत्ययं वदन्ति, मानवा भयं**
**विहाय, तस्य चाश्रयं नयन्ति मुक्ति-सिद्धये ।**

*अन्वयः* ( Prose Order )

अनुच्च नीलभूधरे, समुच्चरम्य मन्दिरे, चत्वरे च कृपामयः जगत्पतिः विराजते । "अयं (जगत्पतिः) अनाथ-नाथः" इति (लोका भक्ता वा) वदन्ति । (अतएव, तस्मिन्) भयं विहाय मुक्ति-सिद्धये च तस्य आश्रयं नयन्ति । (श्रीमन्दिरं गत्वा जगन्नाथस्य शरणापन्ना भवन्ति इत्यर्थः) ।

Meaning :

There stands (on the sea-shore in the state of Orissa or ancient Kalinga) a small hill, known (in Puranic literature) as the Neelagiri =(The Blue Hill). (The upper portion of this hillock was chopped off to provide a base for a sublime temple to be built for Jagannatha- by the legendary king, Indra-dyumna of Avantee

in western India). On it, again, stands a very tall and beautiful temple (that we see now, built in the 12th century A. D.). In the main temple, (ie. the sanctum sanctorum), there is a raised platform (Known as the Ratnavedi) and (Lord) Jagannatha is seen seated on it to infuse purity into human beings. He is known widely (to his devotees) as अनाथनाथ or the Protector of all those living beings who have none else to give them shelter at the time of their misery or distress. Therefore, people approach him without the slightest fear and seek shelter (at his lotus feet) in order to make themselves free from all sorts of bondage (physical, mental & spiritual).

[**Notes**:— In place of जगन्नाथ, the word जगत्पति has been used, the meaning being the same. ]

ଓଡ଼ିଆରେ ଅର୍ଥ :

ଓଡ଼ିଶାର ସମୁଦ୍ର କୂଳରେ (ଏବେ ଯେଉଁଠାରେ ପୁରୀ-ସହର ଅବସ୍ଥିତ) 'ନୀଳଗିରି' ନାମକ ଏକ ପାହାଡ଼ ଥିଲା। (ଅବନ୍ତୀର ରାଜା ଇନ୍ଦ୍ରଦ୍ୟୁମ୍ନ ସେହି ପାହାଡ଼ର ଉପର ଅଂଶ କଟାଇ ଦେଇ, ତା' ଉପରେ ଏକ ବରାଟ ମନ୍ଦିର ତୋଳାଇ, ଜଗନ୍ନାଥଙ୍କୁ ତହିଁରେ ପ୍ରତିଷ୍ଠା କରିଥିବା କଥା ପୁରାଣମାନଙ୍କରେ ବର୍ଣ୍ଣିତ ଅଛି)। ସେହି

ନୀଳଗିରି ( =ନୀଳଶୈଳ=ନୀଳାଚଳ=ନୀଳାଦ୍ରି — ସବୁର ଅର୍ଥ ସମାନ) ଉପରେ ଏକ ଅତ୍ୟୁଚ୍ଚ ଏବଂ ସୁନ୍ଦର ମନ୍ଦିର ଠିଆହୋଇଛନ୍ତି (ଏବଂ ଆଜିର ଏହି ମନ୍ଦିର, ଆଠଶହ ବର୍ଷ ତଳେ, ଦ୍ୱାଦଶ-ଶତାବ୍ଦୀରେ ନିର୍ମିତ ହୋଇଥିଲା) । ଏହି ମହାମନ୍ଦିରର ଗର୍ଭଗୃହ ଭିତରେ (ରତ୍ନବେଦି ନାମକ) ଯେଉଁ ବେଦି ରହିଅଛି, ଲୋକଙ୍କ ଠାରେ ପବିତ୍ରତା ଜନ୍ମାଇବା ପାଇଁ ଜଗନ୍ନାଥ ତାହା ଉପରେ ବିରାଜମାନ କରିଅଛନ୍ତି । (ତାଙ୍କ ଭକ୍ତମାନଙ୍କ ମଧ୍ୟରେ) ସେ 'ଅନାଥନାଥ' ନାମରେ ପରିଚିତ (ଅର୍ଥାତ୍ ଯେଉଁ ପ୍ରାଣୀମାନଙ୍କର ଶକ୍ତିଶାଳୀ ବାପା, ମା, ଭାଇ, ପୁଅ, ବନ୍ଧୁ ପ୍ରଭୃତି କେହି 'ରକ୍ଷକ' ନାହାନ୍ତି, ଯେଉଁମାନେ ଅ-ରକ୍ଷିତ ଓ ଅସହାୟ, ସେମାନଙ୍କୁ ଜଗନ୍ନାଥ ହିଁ ରକ୍ଷା କରିଥାନ୍ତି । ଏହି କାରଣରୁ ଲୋକେ, ନିଜ ନିଜ ମନରେ କୌଣସି ଭୟଭାବ (ବା ସଙ୍କୋଚ ଭାବ) ଅନୁଭବ ନକରି, ତାଙ୍କ-ଠାରେ ଆଶ୍ରୟ ନେବାକୁ ଯାଇଥାଆନ୍ତି । (ସେମାନଙ୍କ ବିଶ୍ୱାସ ଯେ,) ଜଗନ୍ନାଥଙ୍କଠାରେ (ତାଙ୍କ ପାଦ-ପଦ୍ମରେ) ଆଶ୍ରୟ ନେଇଗଲେ, ସମସ୍ତ ପ୍ରକାରର ବନ୍ଧନରୁ ମୁକ୍ତି ମିଳିପାରିବ ।

[**ସୂଚନା** :— ଏହି ନୃତ୍ୟ-ଛନ୍ଦରେ 'ଜଗନ୍ନାଥ' ଶବ୍ଦଟିକୁ ବସାଇବାରେ ଅସୁବିଧା ହେବାରୁ ତାହା ବଦଳରେ 'ଜଗତ୍-ପତି' ଶବ୍ଦ ବ୍ୟବହାର କରାଯାଇଛି । ସଂସ୍କୃତ ସାହିତ୍ୟରେ ଏଭଳି ପ୍ରୟୋଗ ଏକ ପରଂପରାରେ ପ୍ରତିଷ୍ଠିତ ହୋଇଯାଇଛି । 'ପତି' ଶବ୍ଦର ଅର୍ଥ ହେଉଛି— 'ନାଥ' । ତେଣୁ ଜଗତ+ପତି=ଜଗତ୍+ନାଥ =ଜଗନ୍ନାଥ । ]

## VERSE—2

अपाणि-पाद-लाञ्छनं हिमांशु-सूर्य-लोचनम्
अनन्त--पाप--मोचनं नमामि चित्त-रोचनम् ।
अये ! जगत्पतेऽचिरं मनश्च मे सदाऽस्थिरम्
पदाब्जयोः तव स्थिरं भवेद्-विमुक्तये चिरम् ।

*अन्वयः* ( Prose Order ) :

( अहम् ) अपाणिपादलाञ्छनं, हिमांशुसूर्यलोचनं, अनन्तपापमोचनं, चित्तरोचनं च (तं जगन्नाथं) नमामि ।

अये जगत्-पते ! (एषैव मे प्रार्थना, यत्) अचिरं, सदा अस्थिरं मे मनः, चिरं (चिरकालं यावत्) तव पदाब्जयोः, (मम) विमुक्तये च स्थिरं भवतु । (पदाब्जयोः तव =पदाब्जयोस्तव)

## Meaning:

Jagannatha (as we see his wooden image) has neither the palms (at the end of both his arms) nor the feet (in both his legs) and this fact constitutes one of the most significant and spectacular aspects of his identity (in the form of his wooden image). His eyes (very big and circular) (are believed to) represent

the SUN & the MOON (which have been described by the Indian Poets as the two eyes of god). By looking at the eyes of Lord Jagannatha and by his grace in general, a person is able to destroy his पाप (sins) endlessly (and thus makes his body, mind & spirit shine with punya). Therefore, I bow down before him in as much as the image of Jagannatha is a perennial source of joy (for his devotees).

Oh Lord of the universe ! let my own mind which is always fickle & unsteady (सदा अस्थिरं) be immediatly (अचिरं) fixed or studded (स्थिरं भवेत्) to your lotus feet and this should continue to be there for all times to come (चिरं) so that, I shall be able to shake off all my fetters of life.

[ **Notes:** – In this stanza, the word पाप has been used. In the meaning given below it, the word पुण्य has been used. Now, it is highly gratifying to note here that the words पाप and पुण्य have been accepted as English words (Vide, the internationally famous Webster's Dictionary, latest edition. ]

## ଓଡ଼ିଆରେ ଅର୍ଥ :

ଜଗନ୍ନାଥଙ୍କର (ଅର୍ଥାତ୍ ତାଙ୍କର ଦାରୁବିଗ୍ରହ ଦେହରେ) ବାହୁ ଅଛି, ମାତ୍ର କରତଳ (ପାଞ୍ଚ ଆଙ୍ଗୁଠି ଥିବା ହାତର ଅଂଶ) ନାହିଁ । ସେହିପରି, ଗୋଡ଼ଅଛି, କିନ୍ତୁ ପାଦ ନାହିଁ । ଏହି ହାତ ଗୋଡ଼ ନଥିବା ହିଁ ତାଙ୍କୁ (ଭାରତର ଦେବ ଦେବୀମାନଙ୍କ ଭିତରେ) ଚିହ୍ନିବାର ସବୁଠାରୁ ଏକ ବଡ଼ ଚିହ୍ନ (ଲକ୍ଷଣ) । ତାଙ୍କର ଦୁଇଟି (ବିଶାଳ ଏବଂ ସୁଗୋଲ) ନୟନରୂପେ ସୂର୍ଯ୍ୟ ଏବଂ (ପୂର୍ଣ୍ଣ) ଚନ୍ଦ୍ର ଶୋଭା ପାଉଅଛନ୍ତି । (ଭାରତର କବିମାନେ ସୂର୍ଯ୍ୟ ଓ ଚନ୍ଦ୍ରଙ୍କୁ ସର୍ବବ୍ୟାପକ ଭଗବାନଙ୍କର ଦୁଇ ଚକ୍ଷୁରୂପେ ବର୍ଣ୍ଣନା କରି ଅଛନ୍ତି) । (ଭକ୍ତମାନେ ବିଶ୍ୱାସ କରନ୍ତି ଯେ,) ଜଗନ୍ନାଥଙ୍କୁ ଦେଖିଲେ ତଥା ତାଙ୍କର ଦୁଇ ଚକ୍ଷୁ ଦର୍ଶନ କଲେ ସୀମାହୀନ ଭାବରେ ପାପ ଦୂର ହୁଏ । ଯାହାଙ୍କର ମୂର୍ତ୍ତି ଦେଖିଲେ ମନରେ ଆନନ୍ଦ ଜାତ ହୁଏ, ମୁଁ ସେହି (ଦାରୁ ବିଗ୍ରହ) ଜଗନ୍ନାଥଙ୍କୁ ନମସ୍କାର କରୁଅଛି ।

ହେ 'ଜଗତର ନାଥ' ! (ମୋର ବିନୀତ ନିବେଦନ ଯେ,) ଅତିଶୀଘ୍ର (ଅଚିରଂ), ସବୁବେଳେ ଅସ୍ଥିର (ସଦାଽସ୍ଥିରଂ) ହେଉଥିବା ମୋର ମନ ଚିରକାଳଲାଗି (ଚିରଂ) ଆପଣଙ୍କ ପାଦପଦ୍ମରେ ଲାଗିରହୁ (ସ୍ଥିରଂ ଭବେତ୍)—ଯାହା ଫଳରେ ମୋର ସମସ୍ତ ସାଂସାରିକ ବନ୍ଧନ (ବଳେ ବଳେ) ଛିନ୍ନ ହୋଇଯିବ ।



## VERSE—3

अशेष-पुष्प-मालिका-कलाप-मण्डनाग्रही
प्रमत्त-दुष्ट-निग्रहे सुसज्जितो हि विग्रहः ।
स्वभक्त-पंक्ति-मुक्तये चकास्ति रक्ति-युक्तता
प्रपत्तिसिक्त-मानवे प्रसक्तिरेव सर्वथा ।

अन्वयः ( Prose Order ) :

(स जगन्नाथः) अशेष पुष्पमालिका कलाप (समूह) मण्डनाग्रही (वर्त्तते) । प्रमत्त दुष्ट निग्रहे हि (तस्य) विग्रहः (मूर्तिः) सुसज्जितः (विद्यते) ।

स्वभक्तपंक्तिमुक्तये (तस्य वदनमण्डले) रक्तियुक्तता चकास्ति । प्रपत्तिसिक्त मानवे सर्वदा (तस्य) प्रसक्तिः (स्नेहः) एव (प्रवर्त्तते) ।

Meaning :

(In the different seasons of the year) Lord Jagannatha takes pleasure in making his body look gorgious with garlands of diverse types of flowers. In order to put down ruthlessly all those persons whose activities are responsible for the misery of the others ( in the human society), Jagannatha remains alert always (as is indicated by His body on the Ratnavedi).

Again, patches of red-colour are seen on his face. Since 'red-colour' (in Indian Poetry) is a symbol of love and affection, well, it may be presumed that the Lord is full of affection for his devotees in respect of their complete freedom from worldy worries & fetters. Further, those persons who approach Him with a deep sense of self-surrender (प्रनति-सिक्त) do get His affections (प्रसक्ति=att-achment).

ଓଡ଼ିଆରେ ଅର୍ଥ :

ବିଭିନ୍ନ ଋତୁ ଅନୁସାରେ ମିଳୁଥିବା ବହୁ ପ୍ରକାରର ଫୁଲମାଳଦ୍ୱାରା ନିଜ ଦେହକୁ ମଣ୍ଡନ କରିବାଲାଗି ଜଗନ୍ନାଥଙ୍କର ଆଗ୍ରହ ହେଉଛି ଅତ୍ୟଧିକ । ପୁଣି, ଜନସମାଜରେ ଯେଉଁମାନେ ଉଦ୍ଧତ ଏବଂ ଦୁଷ୍ଟ ହେବାଫଳରେ, ଅନ୍ୟମାନଙ୍କର ଦୁଃଖର କାରଣ ହୁଅନ୍ତି, ସେମାନଙ୍କୁ ହଟାଇଦେବାପାଇଁ ସେହି ଜଗନ୍ନାଥ ତାଙ୍କ ଦାରୁବିଗ୍ରହକୁ ସବୁବେଳେ ଜାଗଡଆର କରି ରଖିଛନ୍ତି ।

ଜଗନ୍ନାଥଙ୍କ ମୁହଁକୁ ଚାହିଁଲେ ତାଙ୍କ ତୁଣ୍ଡରେ ଏବଂ ଆଖିରେ ରକ୍ତିମା (ନାଲିରଙ୍ଗ) ଦେଖାଯାଏ । (ନାଲିରଙ୍ଗ ହେଉଛି ଅନୁରାଗର ଚିହ୍ନ ଏବଂ ଏଭଳି ବର୍ଣ୍ଣନା ଭାରତୀୟ ସାହିତ୍ୟରେ ସୂଚରିତ) । ତେଣୁ ମନେହେଉଛି, ଜଗନ୍ନାଥଙ୍କ ମୁହଁରେ ଯେଉଁ ରକ୍ତ (ରକ୍ତିମା) ସଂଯୁକ୍ତ ହୋଇ ରହିଛି ବା ଶୋଭାପାଉଛି (ଚକାସ୍ତି),

ତାହାର ଲକ୍ଷ୍ୟ ହେଉଛି ଏହି ଯେ, ନିଜର ଭକ୍ତସମୂହକୁ (ସଂସାର ବନ୍ଧନରୁ) ମୁକ୍ତିଦେବା ବିଷୟରେ ସେ ଅନୁରାଗ ପ୍ରକାଶ କରୁଅଛନ୍ତି । ଯେଉଁ ଲୋକମାନେ ପ୍ରପତ୍ତିରେ ସିକ୍ତ ଅଟନ୍ତି, ଅର୍ଥାତ୍ ତାଙ୍କଠାରେ ଶରଣ ପଶନ୍ତି, ତାଙ୍କ ପ୍ରତି ସବୁବେଳେ ଜଗନ୍ନାଥଙ୍କର ପ୍ରସକ୍ତି ବା ଅନୁରାଗ ରହିଥାଏ ।

[ସୂଚନା:—କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ତାଙ୍କ କୋଟି-ବ୍ରହ୍ମାଣ୍ଡ ସୁନ୍ଦରୀ ନାମକ ମହାକାବ୍ୟର ସମଗ୍ର ପ୍ରଥମ ଛାନ୍ଦଟିରେ ଜଗନ୍ନାଥଙ୍କର ବିବିଧ ଗୌରବ ବର୍ଣ୍ଣନା କରିଛନ୍ତି । ତହିଁରେ, ଜଗନ୍ନାଥଙ୍କର ମୁଖରେ ଥିବା ରକ୍ତିମାର ବର୍ଣ୍ଣନା କରି ଲେଖିଛନ୍ତି—

"ପ୍ରବାଳ ତରଣି ଦ୍ୟୁତି ରଙ୍ଗାଧରେ ଅଛି ।"

ଏହି ପ୍ରଥମ ଛାନ୍ଦଟିକୁ, ଯେ କୌଣସି ପ୍ରତିଷ୍ଠିତ ଜଗନ୍ନାଥ ମୂର୍ତ୍ତି ନିକଟରେ ପାଠକଲେ, ଜଗନ୍ନାଥ ଓ ବଳଭଦ୍ରଙ୍କ କଣ୍ଠରେ ଶୋଭା-ପାଉଥିବା ସମସ୍ତ ଫୁଲମାଳ, ଏକା ସମୟରେ, କଉଷରେ କାଟିଲାପରି ଛିଡ଼ି, ତଳେ ପଡ଼ିଯାଏ । ଏହା ଦୁଇଥର ପରୀକ୍ଷିତ ହୋଇଅଛି । ଜଗନ୍ନାଥଙ୍କ ପାଖରେ ଏ ଛାନ୍ଦ ଆବୃତ୍ତି କରିବା ନିଷିଦ୍ଧ । ଏହା ପ୍ରମାଣିତ ହୋଇଥିଲେ ମଧ୍ୟ ପ୍ରତ୍ୟେକ ବ୍ୟକ୍ତି ଏହା ପରୀକ୍ଷାକରିବାକୁ ଇଚ୍ଛାକରିବା ସ୍ୱାଭାବିକ ।]

—୦—

## Verse–4

**अनेक वाद्य-वादना–कुलोत्सवेषु मोदनात्**

**सदा मनः–प्रसादनात् जगत्पतिः प्रमोदताम् ।**

**ढणं ढणं-ढणं-ध्वनत्–सुघण्ट-नाद-माधुरी-**

**तरंग-भंग-लालसो महीतले महीयताम् ॥**

*अन्वयः* (Prose Order) :

जगत् पतिः (जगन्नाथः) अनेक वाद्य-वादनाकुल-उत्सवेषु मोदनात् (आग्रहप्रकाशनात्), (तस्मात्) सदा (तस्य) मनः प्रसादनात् (धरणीतले) प्रमोदताम् । (पुनश्च, स जगन्नाथः) ढणं-ढणं ढणं-ध्वनत्-सुघण्टनाद-माधुरी-तरङ्ग-भङ्ग-लालसो (वर्त्तते) । (सः) महीतले महीयताम् ।

## Meaning :

Lord Jagannatha is very much fond of festivals, high-lighted by the inter-play of a vast variety of musical instruments. (and 13 important festivals of the Lord in the 12 months of the year are well-known in Orissa). This fills him with joy and therefore, let the Lord of the universe continue to enjoy the festivals (round the year).

On several occasions (as in the case of the world-famous Car festival), the Ghanta (घण्ट, an instrument of that name) is played upon and we all hear the melodious sound, 'dhanam dhanam-dhanam', arising out of it. The sound of the ghanta spreads in all directions, (as if) in waves and (the devotees feel that) the Lord enjoys the sound-waves to HIS hearts' content (or is very much fond of it). (It is our earnest desire) that Lord Jagannatha continues to shine bright on the face of the earth (as the supreme object of worship).

ଓଡ଼ିଆରେ ଅର୍ଥ :

ଜଗନ୍ନାଥଙ୍କର (ବର୍ଷର ବିଭିନ୍ନ ସମୟରେ) ଯେଉଁ ଉତ୍ସବମାନ ଅନୁଷ୍ଠିତ ହୁଏ, ସେହି ଉତ୍ସବଗୁଡ଼ିକ, ବିଭିନ୍ନ ପ୍ରକାରର ବାଦ୍ୟ-ବାଦନରୁ ଉଠୁଥିବା ନାନାପ୍ରକାରର ମଧୁର ଧ୍ୱନିଦ୍ୱାରା ଆକୁଳ ବା ପରିପୂର୍ଣ୍ଣ ହୋଇଥାଏ । ସେଭଳି ଉତ୍ସବଗୁଡ଼ିକରୁ ଜଗନ୍ନାଥ ପ୍ରମୋଦ (ଆନନ୍ଦ) ଲାଭ କରିଥାନ୍ତି ଏବଂ ତାହାଦ୍ୱାରା ତାଙ୍କର ମନ ସବୁବେଳେ ପ୍ରସନ୍ନ ହୋଇ ରହିଥାଏ । ଜଗତର ନାଥ ଜଗନ୍ନାଥ ଏଭଳି ଉତ୍ସବଗୁଡ଼ିକୁ ଅନୁଷ୍ଠିତ କରାଇ ଚିରକାଳ ଆନନ୍ଦ ଲାଭ କରୁଥାଆନ୍ତୁ ।

ଯେତେବେଳେ (ରଥଯାତ୍ରା ପ୍ରଭୃତିବେଳେ) ଠଣ ଠଣ ଠଣ ହୋଇ ଭଲ ଭଲ ଘଣ୍ଟ ବାଜୁଥାଏ, ସେହି ଘଣ୍ଟର ଧ୍ୱନିଗତ ମାଧୁର୍ଯ୍ୟ

ତରଙ୍ଗିତ ହୋଇ ଚତୁର୍ଦ୍ଦିଗରେ ଖେଳଯାଉଥାଏ । (ଲୋକେ ସମୁଦ୍ରରେ ସ୍ନାନ କଲାବେଳେ "ଲହଡ଼ି-ଭଙ୍ଗ"କରି ଯେପରି ଆନନ୍ଦ ପାଆନ୍ତି, (ମନେହୁଏ) ଜଗନ୍ନାଥ ମଧ୍ୟ ସେହିପରି ଘଣ୍ଟଧ୍ୱନିର ତରଙ୍ଗଗୁଡ଼ିକୁ "ଭଙ୍ଗ" କରିବାପାଇଁ ଆଗ୍ରହୀ ହୋଇ ଉଠିଥାନ୍ତି । ଏଭଳି ହେଉଁ ଜଗନ୍ନାଥ, ଏହି ସଂସାରରେ ସେ ମହମାପୁ ହୋଇ ଉଠନ୍ତୁ ।

—o—

---

पञ्चम पद्यस्य अन्वयः । Prose-order of verse No. 5

महाप्रसाद-शृङ्खला समस्त-जातिमेखला (स्वरूपिणी) भवति । सा शृङ्खला विभेद चेतना-हला-हलाय नाशसंकुला । जगत्पतेः इयं पुरी (नगरी) धरा-अमरावती-पुरी (स्वरूपा) । (एतस्याः पुर्य्याः) निसर्ग-दिव्य-माधुरी मे शुभङ्करी भवेत् (इति मम कामना) ।

—*—

## Verse—5

**महाप्रसाद–शृङ्खला समस्त–जाति–मेखला**
**विभेद–चेतना–हला–हलाय नाश–संकुला ।**
**जगत्पतेरियं पुरी धराऽमरावती–पुरी**
**निसर्ग–दिव्य–माधुरी भवेच्च मे शुभङ्करी ।**

अन्वयः — See at page 12.

## Meaning :

Mahaprasad (महाप्रसाद) is the name of the food offered to Jagannatha (either in the form of confections, sweets etc. or in the form of boiled rice, dal and vegetable dishes). Let us compare the Mahaprasad with an iron chain (शृङ्खला). In India, the basic land of the Hindus, there are several castes and sub-castes (in Hinduism) and they do not come closer to one another on account of a strong sense of caste distinction. But, the Mahaprasad of the Puri Temple is like an iron chain that brings the various castes and sub-castes closer to one another. (In other words, there may be a number of pieces of straw or wood lying on the ground. They are all separate from and another. But when a piece of rope or chain is taken round them, they become

very close to one another, Similarly, any Hindu may think that he belongs to a higher caste and that he should not dine with another Hindu of a lower caste on the same table or partake food from the same plate. But, when Mahaprasad is served, Hindus of all castes and sub-castes forget all sorts of caste-di tinctions and eat on the same table and take food from the same plate (like two children of one family, eating from the same plate).

When a piece of thread or a chain is taken round the waist of a person, it is called a Mekhala (मेखला). So, when a piece of thread is taken round the waist and tightened, it brings about greater cohision (or nearness) among those parts of the body that came with in the belt or the circumference (and any one of as can experience it). Similarly the Maha-prasad of the Puri Temple acts like a Mekhalaa and makes the various castes and sub-castes realise that they are really very much closer to one another.

This puree (or of the holy city) of Jagannatha is like the capital city of the gods ( in heaven ), known as the Amaraavatee

(अमरावती). The holy city of Puri looks beautiful on account of natural scenery (in as much as there is the sea) (Bay of Bengal) on one of its sides and there are the coconut and casaurina groves on the other three sides) I wish sincerely that the natural scenery (the colour of which is in conformity with that of the body of Jagannatha) does good to me (for my spiritual upliftment).

ଓଡ଼ିଆରେ ଅର୍ଥ :

ଜଗନ୍ନାଥଙ୍କ ମନ୍ଦିରରେ ଯେଉଁ ମହାପ୍ରସାଦ ମିଳେ, ତାକୁ ଗୋଟିଏ (ଲୁହା) ଶିକୁଳି ସଙ୍ଗେ ତୁଳନା କରାଯାଉ । ଭାରତବର୍ଷରେ ହିନ୍ଦୁଧର୍ମରେ ଆମେ ଅନେକ ଜାତି ଓ ଉପଜାତି ଦେଖିବାକୁ ପାଉ । ସେମାନଙ୍କ ମଧ୍ୟରେ ଏଭଳି ଭେଦଭାବ ରହିଛି ଯେ, ସମସ୍ତଙ୍କୁ ଗୋଟିଏ ସ୍ଥାନରେ ମିଳାଇକରି ରଖିବା ସହଜ ନୁହେଁ । ଅଥଚ ଜଗନ୍ନାଥଙ୍କ ଭୋଗ ବା ମହାପ୍ରସାଦରୂପକ ଶିକୁଳି ହିନ୍ଦୁଧର୍ମ ଅନ୍ତର୍ଗତ ସମସ୍ତ ଜାତି ଏବଂ ଉପଜାତିମାନଙ୍କୁ ବାନ୍ଧିକରି ରଖିବାର ଗୋଟିଏ ଶିକୁଳି ସ୍ୱରୂପ । ମନେକରନ୍ତୁ, ଆମ ଅଣ୍ଟାଗୁଡ଼ପଟେ ଆମେ ଗୋଟିଏ ସୂତା, ଟାଣୁଆଭାବରେ ଗୁଡ଼ାଇକରି ବାନ୍ଧିଦେବା । ସୂତା ଗୁଡ଼ାଇହେଲେ ଅଣ୍ଟାଗୁଡ଼ପଟେ ତାହା ଗୋଟାଏ 'ମେଖଳା' ହୋଇ ରହିବ । ଏହା ଫଳରେ, ଦେହର ବିଭିନ୍ନ ଅଂଶ ଲଗାଲଗି ହୋଇ ମେଖଳାର ପରିସର ମଧ୍ୟରେ ଟାଣିହୋଇ ରହିଗଲା ; ମହାପ୍ରସାଦ ଠିକ୍ ସେହିପରି ଗୋଟିଏ ମେଖଳାର କାର୍ଯ୍ୟ କରେ । ମନୁଷ୍ୟ ଦେହରେ ବନ୍ଧାଯିବା ମେଖଳା, ବିଭିନ୍ନ ଅଙ୍ଗକୁ ଲଗାଲଗି କରି ରଖିଲାପରି

ମହାପ୍ରସାଦ, ହିନ୍ଦୁଧର୍ମ ଅନ୍ତର୍ଗତ ଏବଂ ଭେଦଭାବଯୁକ୍ତ ସବୁ ଜାତିର ଲୋକଙ୍କୁ ପରସ୍ପର ସହିତ ବାନ୍ଧିକରି ରଖେ । (ବିଭିନ୍ନ ଜାତିର ଲୋକ ଗୋଟିଏ ପାତ୍ରରେ ଭାତ-ତିଅଣ ପ୍ରଭୃତି ଖାଆନ୍ତି ନାହିଁ । କିନ୍ତୁ ଗୋଟିଏ ପାତ୍ରରେ ମହାପ୍ରସାଦ ବଢାଯାଇଥିଲେ, ମନ ଭିତରେ କୌଣସି ଭେଦଭାବ ଅନୁଭବ ନକରି (ସେହି ଗୋଟିଏ ପାତ୍ରରୁ) ବିଭିନ୍ନ ଜାତିର ଲୋକେ ମହାପ୍ରସାଦ ସେବନ କରିଥାଆନ୍ତି । ତେଣୁ ହିନ୍ଦୁ ଧର୍ମର ବିଭିନ୍ନ ଜାତି ମଧ୍ୟରେ ଯେଉଁ ଭେଦଭାବ ରହିଛି, ତାକୁ ଯଦି ଆମେ **ଭୁଜଙ୍ଗର** ବିଷ ସହିତ ତୁଳନା କରିବା, ତାହାହେଲେ, ସେହି ବିଷକୁ (ଅର୍ଥାତ୍ ଭେଦଭାବକୁ) ବିନାଶ କରିବା ଶକ୍ତି ମହାପ୍ରସାଦଠାରେ ପୂରିରହିଛି ।

ଜଗତର ନାଥ ଜଗନ୍ନାଥଙ୍କର ନିବାସର ସ୍ଥଳୀ ଅଟେ ଏହି ଯେଉଁ ପୁରୀ ସହର, ତାକୁ ସମଗ୍ର ପୃଥିବୀର ଅମରାବତୀ-ନଗରୀ ସଙ୍ଗେ ତୁଳନା କରାଯାଇପାରେ । (ସ୍ୱର୍ଗର ରାଜଧାନୀ ହେଉଛି ଅମରାବତୀ ନାମକ ନଗରୀ ବା ପୁରୀ) ତାହା ଯେପରି ପରମ ପବିତ୍ର ସ୍ଥାନ, ସମଗ୍ର ପୃଥିବୀରେ ଆମର ଏହି "ପୁରୀ" ସହର ସେହିପରି ପରମପବିତ୍ର ସ୍ଥାନ ରୂପରେ ପରିଚିତ । ସମୁଦ୍ରର ତୀରଭୂମିରେ ଏବଂ ନାରିକେଳ(ନଡିଆ) ପୁନ୍ନାଗ (ପୋଲଙ୍ଗ), ଏବଂ ଝାଉଁ (ଝାସୁଳ) ପ୍ରଭୃତି ବୃକ୍ଷମାନଙ୍କଦ୍ୱାରା ସୁନ୍ଦର ଦେଖା ଯାଉଥିବା ଏହି ପୁରୀ ସହରର ପୁଣ୍ୟ ପ୍ରାକୃତିକ ମାଧୁରୀ (ଭକ୍ତମାନଙ୍କ) ମନରେ ଅପୂର୍ବ ଆନନ୍ଦ ଜନ୍ମାଇଥାଏ । ପୁରୀ ସହରର ଏହି ପ୍ରାକୃତିକ ସୌନ୍ଦର୍ଯ୍ୟ ମୋ ପକ୍ଷରେ ମଙ୍ଗଳମୟ (ଶୁଭଙ୍କର) ହେଉ (କାରଣ ଶ୍ରୀ ଜଗନ୍ନାଥଙ୍କ ଅଙ୍ଗର କାନ୍ତି ବା ବର୍ଣ୍ଣ ଯାହା, ସମୁଦ୍ର ଏବଂ ନାରିକେଳ, ଝାଉଁ ପ୍ରଭୃତି ବୃକ୍ଷ ପୁଞ୍ଜର ବର୍ଣ୍ଣ ମଧ୍ୟ ସେଇଆ ।)

—o—

## Verse–6

**गभीर-पाप-पङ्किले समग्र मर्त्य-मण्डले**
**कुकर्म-कर्द्दमाविले कथं नृणां गतिर्विभो !**
**अधर्म-वर्द्धनं सदा सुधर्म रक्षणं कदा**
**विचारबोधनं मुदा प्रदेहि पालक ! प्रभो !**

*अन्वयः* (Prose Order) :

हे विभो ! (हे जगन्नाथ), गभीर पाप पङ्किले, कुकर्म-कर्दमाविले, समग्र मर्त्य मण्डले नृणां गतिः (सद्गतिः) कथं (भविता) ?

सदा अधर्म वर्द्धनं (भवति), (सुतरां) कदा सुधर्मरक्षणं (भविष्यति) ? हे प्रभो ! (हे) पालक ! **(मह्यं)** मुदा (प्रीतिपूर्णरूपेण) विचारबोधनं (विचार-शक्ति अवबोधन शक्ति च) देहि ।

## Meaning :

Oh Lord (of the universe) ! In these days, the whole world has been covered with layers of mud— the mud of sinful thoughts and actions and every where, we see the silt

of unrighteous activities. In such circumstances, how can human beings make any spiritual progress. ?

Every moment (on the face of the earth), irreligious ideas and actions are on the increase, So, the question that strikes me always is,— "When can human beings realise their noble duties and responsibilities and make real progress in life ?

Oh Lord, the Sustainer of the universe ! kindly and affectionatety, bestow on me such powers of judgment and realisation (as would enable me to get the proper answeı to the question) (as stated above) that agitates my mind.

**ଓଡ଼ିଆରେ ଅର୍ଥ :**

(ହେ ପ୍ରଭୁ ଜଗନ୍ନାଥ) ସମଗ୍ର ସଂସାର ଏବେ ଗଭୀର-ଭାବରେ ମନୁଷ୍ୟମାନଙ୍କର ପାପରୂପକ ପଙ୍କଦ୍ୱାରା ପରିପୂର୍ଣ୍ଣ ହୋଇ ରହିଛି । ଲୋକମାନଙ୍କର କୁକର୍ମ (ମନ୍ଦକାର୍ଯ୍ୟ) ରୂପକ କାଦୁଅ (କର୍ଦ୍ଦମ) ଚଉଆଡ଼େ ବ୍ୟାପ୍ତ ହୋଇ ରହିଛି । ହେ ପ୍ରଭୁ ! ଏଭଳି ପରିସ୍ଥିତିରେ ଲୋକମାନଙ୍କର ଉନ୍ନତି (ଚେତ' ବା ଅଗ୍ରଗତି କପରି ଅବା ହୋଇପାରିବ ? ହେ ପ୍ରଭୁ ! ସବୁବେଳେ ତ ଅଧର୍ମ ହିଁ ବଢି ବଢି ଚାଲିଛି । ତାହାହେଲେ, କେତେବେଳେ (କଦା) ଲୋକମାନେ

ସେମାନଙ୍କର ଉଚ୍ଚ ଏବଂ ଉଦାର ମନ୍ତ୍ର ପରିପାଳନ କରିବାକୁ ସମର୍ଥ ହେବେ ? ହେ ପ୍ରଭୁ ଜଗନ୍ନାଥ ! ତୁମେ ତ ହେଉଛ ଏହି ସଂସାରର ପାଳନକାରୀ । ଏହି ପାପପୂର୍ଣ୍ଣ ସଂସାରରେ ଆମର କର୍ତ୍ତବ୍ୟ କ'ଣ ହେବ, ସେ ସଂପର୍କରେ ମତେ ଅନୁରାଗର ସହିତ ବୁଝିବାର ଶକ୍ତି ଏବଂ ବୁଝିବାର ଶକ୍ତି ପ୍ରଦାନ କର (ଯାହାଫଳରେ ସବୁ କଥା ବୁଝି ବୁଝିବାର, ମୁଁ ଧର୍ମମାର୍ଗରେ ଯିବାପାଇଁ ଚେଷ୍ଟା କରିବ) ।



## Verse—7

**सुनीलचेल–मण्डिते जनार्त्ति·नाश-पण्ड़िते**
**स्वभक्त-भीति·खण्डिते बले रतिः प्रवर्द्धताम् ।**
**प्रमत्त-दानवावली–विमर्द्दने–महाबली**
**रसा-विकर्षणे हली सुमङ्गलं प्रवर्त्तताम् ॥**

*अन्वयः* (Prose Order) :

सुनीलचेलमण्ड़िते, दीनार्त्तिनाश-पण्ड़िते, स्वभक्त-भीति-खण्डिते वले (बलभद्रदेवे) (मम) रतिः (अनुरागः) प्रवर्द्धताम् ।

प्रमत्तदानवावली-विमर्द्दने महावलो रसा-विकर्षणे (च) हली (कर्षणकारी) (अस्माकं) सुमङ्गलं प्रवर्त्तताम् ।

## Meaning :

May my devotion increase in leaps and bounds for Lord Balabhadra (of the Puri Temple) who is fond of wearing dresses, blue in colour (in striking contrast to the colour of his body, which is white), who is proficient in redressing the misery of the people (of the world) and who dispels all sorts of fear from the minds of his devotees.

I pray that (Lord) Balabhadra to play a vital role in the perpetuation of human happiness in as much as HE is strong enough to crush all kinds of demons and devilish forces (that are responsible for human misery and affliction) and also is capable of providing food to people of the world (because His name is HALEE, which means 'the holder of the plough" that tills the soil and helps in the production of crops like paddy, wheat etc.)

**ଓଡ଼ିଆରେ ଅର୍ଥ :**

ଯେଉଁ ବଳଭଦ୍ର (ଗୌରବର୍ଣ୍ଣ) ମହାଦେବଙ୍କ ପରି ନିଜର ଗୋରା ଦେହକୁ ସୁନ୍ଦର ଦିଶିବାଭଳି ନୀଳବସ୍ତ୍ର ପରିଧାନ କରିଥାଆନ୍ତି (ଏବଂ ସେହି କାରଣରୁ "ନୀଳାମ୍ବର" ନାମରେ ପରିଚିତ ହୁଅନ୍ତି), ଯେଉଁ ବଳଭଦ୍ର ପୃଥିବୀର ଲୋକମାନଙ୍କର ଦୁଃଖ ବିନାଶ କରିବା-ଦିଗରେ ଅତ୍ୟନ୍ତ ପଣ୍ଡିତ ବା ପ୍ରବୀଣ, ଯେଉଁ ବଳଭଦ୍ର ନିଜ ଭକ୍ତମାନଙ୍କର ସମସ୍ତପ୍ରକାର ଭୟ ଖଣ୍ଡନ କରିଥାଆନ୍ତି, ସେହି ବଳଙ୍କ ଠାରେ (ଅର୍ଥାତ୍ ବଳଭଦ୍ରଙ୍କଠାରେ) ମୋର ଅନୁରାଗ ବିଶେଷଭାବରେ ବୃଦ୍ଧିଲାଭ କରୁ ।

(ପୁରାଣମାନଙ୍କ ବର୍ଣ୍ଣନା ଅନୁସାରେ) ଯେଉଁ ବଳଭଦ୍ର ଦୁଷ୍ଟ ଅସୁରମାନଙ୍କୁ ଦଳନକରି (ହତ୍ୟାକରି) ଜଗତର ମଙ୍ଗଳ କରିଥିଲେ, ଯାହାଙ୍କର ନାମ, "ହଳ" ବୋଲି ସୁପରିଚିତ (ଅର୍ଥାତ୍ ଯେଉଁ ଦେବତା ହଳଧାରଣ କରିଥିବାରୁ ଏକଥାର ସୂଚନା

ମିଳୁଛି ଯେ, ହଳଦ୍ୱାରା ଭୂମିକୁ ଚୃଷକରାଗଲେ, ସେ ଭୂମି ଯେପରି କ ଧାନ, ଗହମ, ହରଡ଼, ମୁଗ, ବିରି, ପନିପରିବା ପ୍ରଭୃତି ଲୋକଙ୍କୁ ଦେଇଥାଏ ଓ ସୁଖମୟ ଜୀବନଯାପନ କରିବାଦଗରେ ସେମାନଙ୍କୁ ସାହାଯ୍ୟ କରିଥାଏ, ସେହିପରି ବଳଭଦ୍ର ଲୋକମାନଙ୍କର ବଞ୍ଚିରହିବା ପାଇଁ, ପୃଥିବୀର (ଅବସ୍ଥାଦେଖି) ଅନୁରୂପ ବୁଦ୍ଧି ଲୋକମାନଙ୍କୁ ଦେଉ-ଅଛନ୍ତି, ଯାହାଦ୍ୱାରା ନୂତନ ନୂତନ କୃଷି-ପ୍ରଣାଳୀ ଲୋକଙ୍କ ମନରେ ପ୍ରତିଭାତ ହେବ ଓ ଅଧିକ ପରିମାଣରେ ଫସଲ ଉତ୍ପାଦନ କରିବାକୁ ସେମାନେ ସମର୍ଥ ହେବେ ।



## Verse—8

**भवापरं गुणाकरं निरस्त–दैत्य–कुञ्जरं**
**भुजङ्ग-वार-सुन्दरं भजेऽतिदुःख–मन्दरम् ।**
**रथोत्सवेऽग्रगामिनं गुणानुरूप–नामिनं**
**वरी-सुपेय-कामिनं नमामि सर्व–यामिनम् ॥**

अन्वयः (Prose Order) :

(अहं) भवापरं, गुणाकरं, निरस्त-दैत्य-कुञ्जरं, भुजङ्ग-वार-सुन्दरं, अति-दुःख-मन्दरं (च) (बलभद्रदेवं) भजे ।

(अहं) रथोत्सवे (सुप्रसिद्ध रथयात्रा-अवसरे) अग्रगामिनं, गुणानुरूपनामिनं, 'वरी'-सुपेय-कामिनं, सर्वयामिनं (तं बलभद्रदेवं) नमामि ।

## Meaning :

I worship and bow down before Balabhadra Deva who is Lord Siva in another form or shape, who is a repository of good qualities, who had defeated or distroyed gigantic demons, who looks beautiful with (seven) serpants and who is like the (legendary) Mandara hill with the help of which the

oceans were churned out and therefore, who is capable of extinguishing the misery of the people).

I offer my salutations and bow down before Him ( i. e. Balabhadra ) who is the first of the Trio to commence his journey (to the Gundichaa ghar ),— being seated on his chariot, whose name is connotative of his qualities, who is fond of a drink, well known as the Kaadambaree and who is capable of visiting any place (or even particle of dust) in the entire universe.

[ **Notes**:— On the occasion of the famous Car Festival, the Trio of the Puri Temple (Vi3)- Jagannatha, Balabhadra and Subhadra) are seated on three chariots— all gorgiously decorated. The chariot that moves first carrys Balabhadra to the Gundichaa ghar (a garden-house where they stay for nine days). The story of the churning of the ocean by the gods and the demons with a hill known as the Mandara is very popular in India.

गुणानुरूप........The name Balabhadra is com-posed of two words, namely, बल and भद्र । Now

बल means strength (which is absolutely necessary to destroy the demons or the evil forces they signify) and भद्र, means polite, gentle and the best behaviour that may be expected of the most enlightened and the most cultured human being

'वरी'...........It is a part of the word, कादम्वरी which is the name of his drink. The use of the word 'वरी' for 'कादम्वरी' is in accordance with the scholarly tradition of the poets of India.

ଓଡ଼ିଆରେ ଅର୍ଥ :

ପଣ୍ଡିତମାନଙ୍କର ମତ ଯେ, ବଳଭଦ୍ର ହେଉଛନ୍ତି ସ୍ୱୟଂ ମହାଦେବ ଶିବ । ସୁତରାଂ ବଳଭଦ୍ର ହେଉଛନ୍ତି ଭବାପର (ଭବ+ଅପର) ଅର୍ଥାତ୍ ଆଉଜଣେ ଶିବ (ସ୍ୱରୂପ) । ସେ ହେଉଛନ୍ତି (ଶିଷ୍ଟ-ପାଳନ ଓ ଦୁଷ୍ଟ ଦଳନ ରୂପକ) ବିଭିନ୍ନ ଗୁଣର ଆକର ବା ଖଣି ସ୍ୱରୂପ । (ପୁରାଣ ମାନଙ୍କର ବର୍ଣ୍ଣନା ଅନୁସାରେ ସେ ଅନେକ ଦୈତ୍ୟଙ୍କୁ (ଦାନବ ବା ରାକ୍ଷସମାନଙ୍କୁ) ବିନାଶ କରିଅଛନ୍ତି । ତାଙ୍କ ବିଗ୍ରହରେ ଥିବା ସର୍ପ ସମୂହ (ସାତଗୋଟି ନାଗସାପ) ସୁବିନ୍ୟସ୍ତ ହୋଇ ରହିଅଛନ୍ତି । ପୁଣି, ଲୋକମାନଙ୍କର ଦୁଃଖରୂପକ ସମୁଦ୍ରକୁ ମନ୍ଥନ କରିଦେବାପାଇଁ ସେ ମନ୍ଦର ପର୍ବତ ସଦୃଶ ଅଟନ୍ତି ।

(ବିଶ୍ୱ ବିଖ୍ୟାତ) ରଥଯାତ୍ରା ଅନୁଷ୍ଠିତ ହେଉଥିଲାବେଳେ ସେ ହୁଅନ୍ତି ଅଗ୍ରଗାମୀ । (ଅର୍ଥାତ୍ ସୁଭଦ୍ରାଙ୍କ ରଥ ଏବଂ ଜଗନ୍ନାଥଙ୍କ

ରଥ ବଡଦାଣ୍ଡରେ ଗୁଣ୍ଡିଚାଘରଆଡେ ଯିବା ଆଗରୁ, ବଳଭଦ୍ରଙ୍କ ରଥ (ପ୍ରଥମେ) ଯାତ୍ରା କରିଥାଏ) । ତାଙ୍କର ନାମ ଯାହା, ତାଙ୍କ-ଠାରେ ସେହି ନାମର ଅନୁରୂପ ଗୁଣ ମଧ୍ୟ ରହିଅଛି । (ବଳଭଦ୍ର ଶବ୍ଦରେ ଦୁଇଟି ଶବ୍ଦ ଅଛି, ଯଥା— ବଳ ଓ ଭଦ୍ର । ତାଙ୍କର ବଳ ହେଉଛି ଅସୀମ ଓ ମାନବ କଳ୍ପନାର ବାହାରେ । ତେଣୁ ଓଡିଶା-ବାସୀ ଭକ୍ତ ଗଦ୍‌ଗଦ୍‌ହୋଇ ତାଙ୍କୁ 'ବଳୟାରଭୁଜ' ବୋଲି କହନ୍ତି । ସେ ପୁଣି ହେଉଛନ୍ତି 'ଭଦ୍ର' । ଅସୀମ ବଳଥିଲେ ମଧ୍ୟ, ଖାଲି ନିଜ ବଳ ଦେଖାଇବାପାଇଁ ସେ ତାଙ୍କର ବଳ ପ୍ରୟୋଗ କରି ନ ଥାନ୍ତି । ବଳ ଦରକାର ହୁଏ, ପ୍ରବଳ ଦାନବୀ ଶକ୍ତିକୁ ଧ୍ୱଂସ କରିବା ପାଇଁ । ପୁଣି, ସେ ହେଉଛନ୍ତି 'ଭଦ୍ର' । ସମସ୍ତ ମାନବିକ, ଉଚ୍ଚ, ଉଦାର, ଶୀତଳ ଓ ମଧୁର ଗୁଣ 'ଭଦ୍ର' ଶବ୍ଦଦ୍ୱାରା ସୂଚିତ ହୋଇଥାଏ ।

ବଳଭଦ୍ର "କାଦମ୍ବରୀ" ନାମକ ପାନୀୟ ପଦାର୍ଥକୁ ଖାଇ ଭଲ ପାଆନ୍ତି । (ତେଣୁ କବିମାନେ ତାଙ୍କୁ "କାଦମ୍ବରୀ ପାନ ପ୍ରମତ୍ତ" ବୋଲି ବର୍ଣ୍ଣନା କରିଛନ୍ତି) । ସେ ହେଉଛନ୍ତି ସର୍ବଯାମୀ । ଚତୁର୍ଦ୍ଦଶ ଭୁବନରେ ଏଭଳି ସ୍ଥାନ ନାହିଁ, ଯାହା ଭିତରକୁ ବଡ଼ଠାକୁର ବଳଭଦ୍ର ଇଚ୍ଛାକଲାମାତ୍ରେ ଯାଇ ନ ପାରନ୍ତି । ମନୁଷ୍ୟର ଅନ୍ତର ଭିତରକୁ ମଧ୍ୟ ଭଗବାନ୍ ସହଜରେ ଯାଇପାରନ୍ତି ବୋଲି ତାଙ୍କୁ "ଅନ୍ତର୍ଯ୍ୟାମୀ" କୁହାଯାଇଛି । ବଳଭଦ୍ର ସକଳ ସ୍ଥାନକୁ ଯାଇପାରନ୍ତି ବୋଲି ତାଙ୍କୁ ସର୍ବଯାମୀ ବା ସର୍ବଗାମୀ କୁହାଯାଇଛି) । ମୁଁ ଏଭଳି ବିବିଧ ଗୁଣ ଓ ଶକ୍ତିମଣ୍ଡିତ ବଳଭଦ୍ରଙ୍କୁ ବନ୍ଦନା କରୁଅଛି ।

[ସୂଚନା :— ବଳଭଦ୍ର "କାଦମ୍ବରୀ" ନାମକ ତରଳ ପଦାର୍ଥ ପାନ କରନ୍ତି । ଏଠାରେ କାଦମ୍ବରୀ ଶବ୍ଦର ଚାରିଗୋଟି ଅକ୍ଷର ମଧ୍ୟରୁ ଦୁଇଗୋଟି ଅକ୍ଷର ଗ୍ରହଣ କରାଯାଇଛି । ତାହା

ହେଉଛନ୍ତି "ବଶ୍ରୀ" । ଭାରତୀୟ କବିସମାଜରେ ଗୋଟିଏ ପରଂପରା ରହିଅଛି—

"ନାମୈକଦେଶଗ୍ରହଣେ ନାମଗ୍ରହଣମ୍" ।

ଅର୍ଥାତ୍ କୌଣସି ଗୋଟିଏ ନାମରେ ଯେତୋଟି ଅକ୍ଷରଥାଏ, ସେ ସବୁଗୁଡିକ ଅକ୍ଷର ବ୍ୟବହାର ନ କରି, ତାହା ଭିତରୁ ଅଳ୍ପ କେତୋଟି ଅକ୍ଷର ବ୍ୟବହାର କଲେ ମଧ୍ୟ ଚଳିବ । ଯଥା— ରାମଚନ୍ଦ୍ର ବଦଳରେ ରାମ, ସତ୍ୟଭାମା ବଦଳରେ ସତ୍ୟ; ପ୍ରୟୋଗ କଲେ ମଧ୍ୟ ପୂର୍ଣ୍ଣ ନାମଟି ବୁଝାଯିବ । (ଦ୍ରଷ୍ଟବ୍ୟ—କବିସୂର୍ଯ୍ୟ ବଳଦେବ ରଥଙ୍କ ରଚିତ 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ'ର ମଙ୍ଗଳାଚରଣ ଶ୍ଳୋକ । ଏଠାରେ "କାଦମ୍ବରୀ" ବଦଳରେ "ବରୀ" ଶବ୍ଦ ପ୍ରୟୋଗ କରାଯାଇଛି । ଏହା ଭାରତୀୟ କବିପରଂପରାର ଅନୁରୂପ) ] ।

—○—

## Verse—9

**सुभद्रिका सदाशया जगत्तुपालितं यया**
**स्वभक्त-रक्षणेऽभया स्वसा जगत्पतेश्च सा ।**
**त्रिलोक-वन्द्य-देवता-समूह-नित्य-पूजिता**
**मयाऽपि पाद-सेविता निरन्तरं विवर्द्धताम् ।**

अन्वयः (Prose Order) :

या सुभद्रिका (=सुभद्रा-देवी) सदाशया, यया तु जगत् (समग्रं विश्वं) पालितं (भवति), स्वभक्तरक्षणे (या) अभया, सा च जगत्पतेः (जगन्नाथस्य) स्वसा (भगिनी)। (सा देवी) त्रिलोक-वन्द्य-देवता-समुह-नित्य-पूजिता (भवति)। मया अपि (तस्याः) पादसेविता निरन्तरं विवर्द्धताम् ।

## Meaning :

Goddess Subhadraa (alias Subhadrikaa) is full of noble qualities or high intentions. This entire universe is ruled or governed by HER. She fears none in giving protection to her devotees. She is also the sister of (Lord) Jagannatha.

Subhadra is constantly adored by all those gods who are worshipped by the inhabitants of all the three lokas or planes, (namely,

the celestial, the terrestrial and the infernal planes). Let me also develop in me, every moment, a strong desire to dedicate my life at the lotus feet of the (supreme) Mother Goddess.

ଓଡ଼ିଆରେ ଅର୍ଥ :

ଦେବୀ ସୁଭଦ୍ରା (ସୁଭଦ୍ରିକା) ଙ୍କ ମନ ଅତ୍ୟନ୍ତ ମଧୁର, ଉଦାର ତଥା ଉଚ୍ଚଭାବନାରେ ପରିପୂର୍ଣ୍ଣ । ତାଙ୍କଦ୍ୱାରା ଏହି ସମସ୍ତ ଜଗତ୍ ପରିପାଳିତ ହେଉଅଛି । ସୁଭଦ୍ରାଦେବୀ ଜଗତ୍‌ପତି (ଜଗନ୍ନାଥ)ଙ୍କର ଭଗିନୀ ଓ ନିଜର ଭକ୍ତମାନଙ୍କୁ ନିର୍ଭୟ ଚିତ୍ତରେ ରକ୍ଷା କରିଥାନ୍ତି ।

ଯେଉଁ ଦେବତାମାନେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ, ଏହି ତିନି-ଲୋକଦ୍ୱାରା ପୂଜିତ ହୁଅନ୍ତି, ସେହିମାନେ ମଧ୍ୟ ସୁଭଦ୍ରାଙ୍କୁ ଆରାଧନା କରିଥାଆନ୍ତି । ତାଙ୍କର ପାଦପୂଜା କରିବା ଦିଗରେ ମୋ ମନ ସବୁବେଳେ ଅଧିକରୁ ଅଧିକଭାବରେ ଉନ୍ମୁଖ ହୋଇଉଠୁ, ଏକଥା ମୁଁ କାମନା କରୁଅଛି ।



## Verse—10

त्रि-शक्ति-युक्ति-सूचकं त्रिशब्द-भाग-धारकं
तवाभिधानमुच्छुकं करोति सर्वथा न कम् ?
सुधार्मिके कृपाकारो कुमानवे क्षयंकरो
समस्त–लोक–शंकरी भवाऽधमे क्षमाकरो ।

अन्वयः (Prose Order) :

(हे सुभद्रे !) त्रिशक्ति-युक्ति (योग)-सूचकं, त्रिशब्द-भाग-धारकं च) तव अभिधानं (अर्थात् "सुभद्रा" इति नाम) कं (जनं) सर्वथा (निश्चित रूपेण) उच्छुकं (आग्रहान्वितं) न करोति ? (अर्थात् सर्वान् जनान् उत्कण्ठितान् करोति इत्यर्थः) ।

Meaning :

(Oh Mother Subhadraa ! ) There are three letters in your name. They are (1) सु (2) भ and (3) द्रा । From this, we come to know that the three transcendental powers have been integrated into one teture. They are (1) महाकाली (.) महासरस्वती and (3) महालक्ष्मी । Each of these powers (known to their devotees by various names) finds a place in your name

in as much as, the three letters of your name (i e. सु–भ द्रा) are only portions of the names of these three Supreme Powers (known as goddesses to their devotees). (In other words, the 1st letter of your name Subhadra is only the 1st letter of सुमङ्गला or सुभद्रा (and these two words in their turn are only your well-known synonyms) Secondly, the second letter of your name (i. e. सुभद्रा) has been taken from भारती (i e. Saraswatee). (In other words the 'भ' found in your name is the first letter of the word भारती). Thirdly, the 3rd letter of your name as द्रा'. Now, one of the names of महालक्ष्मी is भद्रा। The letter 'द्रा' found in your name is the 2nd letter of भद्रा। Thus, your three lettered name 'सु-भ द्रा'' is a combination of portions of the letters of the three names of the three supreme powers, (namely, महाकाली, महासरस्वती and महालक्ष्मी)।

Oh Mother, to those person who are really religious-minded, you are full of compassion. You bring about the death or the down- fall of those who are anti-social in their action. You are keen on doing good to all the three planes. (Oh mother) Kindly be merciful to a poor creature like me.

[ **Notes** – Actually, behind the Mother Goddess, Subhadraa, there are three temples dedicated to महाकाली (known as विमला), सरस्वती and लक्ष्मी। This lends corrobration to the fact that the powers of these three supreme deities are like radiations from Subhadra, the point of culmination of these three powers].

**ଓଡ଼ିଆରେ ଅର୍ଥ :**

(ହେ ଜନନୀ !) ତୁମର ନାମରେ ଯେଉଁ ତିନୋଟି ଅକ୍ଷର ରହିଅଛି (ଯଥା— ସୁ+ଭ+ଦ୍ରା) ତହିଁରୁ ସୂଚିତ ହେଉଅଛି ଯେ, ତୁମଠାରେ ତ୍ରିଶକ୍ତି ସମନ୍ୱିତ ହୋଇ ରହିଅଛି । (ଅର୍ଥାତ୍ ତୁମେ ହେଉଛ ମହାକାଳୀ, ମହାସରସ୍ୱତୀ ଏବଂ ମହାଲକ୍ଷ୍ମୀଙ୍କର ସମନ୍ୱିତ ବିଗ୍ରହ) । ଏହି ତିନି ଦେବୀଙ୍କର ତିନୋଟି ନାମରେ ଯେଉଁସବୁ ଅକ୍ଷର ରହିଅଛି, ତା' ଭିତରୁ ଗୋଟିଏ ଗୋଟିଏ ଭାଗ ବା ଅଂଶ ସଂଗ୍ରହ କରିଯାଇ "ସୁଭଦ୍ରା" ଶବ୍ଦ ଗଠିତ ହୋଇଅଛି । (ସୁମଙ୍ଗଳା ଶବ୍ଦରୁ ଆସିଛି 'ସୁ', ଭାରତୀ ଶବ୍ଦରୁ ଆସିଛି 'ଭ' ଏବଂ ଭଦ୍ରା (ଲକ୍ଷ୍ମୀ) ଶବ୍ଦରୁ ଆସିଛି 'ଦ୍ରା') । ହେ ଦେବୀ ! (ହେ ଜନନୀ !) ତୁମର ଏ ଯେଉଁ ଅଭିଧାନ (ବା ନାମ), ସେହି ନାମ ଉଚ୍ଚାରଣ କଲାମାତ୍ରେ କାହାର ମନ ଅବା ତୁମପ୍ରତି ଆକୃଷ୍ଟ ହୋଇ ନ ଥାଏ ? (ଅଥବା କେଉଁ ଲୋକ ଅବା ତୁମର ନାମ ଉଚ୍ଚାରଣ କରିବାକୁ ଇଚ୍ଛୁକ ବା ଉନ୍ମୁଖ ହୋଇ ନ ଥାଏ) ।

ଯେଉଁ ମନୁଷ୍ୟମାନେ ନିଜର ପ୍ରକୃତ ଧର୍ମ ଭିତରେ ନିଜକୁ ରଖି, ବିଭିନ୍ନ କର୍ମ କରି ଯାଆନ୍ତି, ସେମାନଙ୍କ ପ୍ରତି ତୁମେ କୃପା

ପ୍ରଦର୍ଶନ କରିଥାଅ । ଯେଉଁ ଲୋକମାନେ ମାନବକଧର୍ମ ତ୍ୟାଗକରି ଅସତ୍ ମାର୍ଗରେ ଗତି କରିଥାଅନ୍ତି, ସେମାନଙ୍କ ପ୍ରତି ତୁମେ କ୍ଷୟଙ୍କରୀ ହୋଇଥାଅ ବା ସେମାନଙ୍କୁ ଧ୍ୱଂସମୁଖରେ ପକାଇଥାଅ । ସ୍ୱଭାବତଃ ତୁମେ ହେଉଛ ସମସ୍ତ ଲୋକର ବା ଚତୁର୍ଦ୍ଦଶ ବ୍ରହ୍ମାଣ୍ଡର ମଙ୍ଗଳ-କାରିଣୀ । ଅତଏବ (ହେ ଜନନୀ !) ଏହି ଅଧମ ଲୋକଠାରେ (ଏହି ଅଧମ କବିଠାରେ ଅଥବା ଏହାକୁ ପାଠ କରିବା ଲୋକ ପ୍ରତି) ତୁମେ କ୍ଷମା ପ୍ରଦର୍ଶନ କର ।

**ସୂଚନା:**— ଦେବୀ ସୁଭଦ୍ରାଙ୍କୁ ବୈଦିକ ମନ୍ତ୍ରରେ 'ସୁଭଦ୍ରିକା' ବୋଲି କୁହାଯାଇଛି । ଗୋଟିଏ ଦୃଷ୍ଟିରୁ ସେ ହେଉଛନ୍ତି ଶ୍ରୀକୃଷ୍ଣଙ୍କର ଭଗିନୀ । କିନ୍ତୁ ଅନ୍ୟ ଏକ ଦୃଷ୍ଟିରୁ ଦେଖିଲେ ସେ ହେଉଛନ୍ତି ଶାକ୍ତ-ମାନଙ୍କର ମହାମାୟା ଏବଂ ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କର ମୂଳାଧାର-ସ୍ୱରୂପିଣୀ । ଜଗନ୍ନାଥ ହେଉଛନ୍ତି ସାକ୍ଷାତ୍ ପରମପୁରୁଷ ବା ପରଂବ୍ରହ୍ମ । ତାଙ୍କପାଖରେ ଅଛନ୍ତି ସୁଭଦ୍ରା, ଯେ ହେଉଛନ୍ତି ହିନ୍ଦୁ ଧର୍ମ ଓ ସଂସ୍କୃତିର ତିନି ମହାଶକ୍ତିର ମୂଳ । ଏହି ଶକ୍ତି ପରଂବ୍ରହ୍ମ-ଙ୍କଠାରୁ ଦୂରରେ ରହି ନ ପାରନ୍ତି । ଜଗନ୍ନାଥଙ୍କ ପଛପଟେ ତିନୋଟି ମନ୍ଦିର ଅବସ୍ଥିତ । ସେହି ତିନୋଟି ମନ୍ଦିର ହେଲା— ଭୈରବୀ ଶକ୍ତିର ମନ୍ଦିର ବା ବିମଳା ମନ୍ଦିର, ସରସ୍ୱତୀଙ୍କ ମନ୍ଦିର ଏବଂ ଲକ୍ଷ୍ମୀଙ୍କ ମନ୍ଦିର । ଜଗନ୍ନାଥଙ୍କ ମନ୍ଦିରର ପଛପଟେ ଏହି ତିନୋଟି ମନ୍ଦିର ଗୋଟିଏ ଧାଡିରେ ଠିଆହୋଇଛି । ମହାକାଳୀ (ବିମଳା), ମହାସରସ୍ୱତୀ ଏବଂ ମହାଲକ୍ଷ୍ମୀ, ଏହି ତିନି ମନ୍ଦିରରେ ପୂଜିତ ହେଉଛନ୍ତି । ଏହି ମହାଶକ୍ତି ମାନଙ୍କର ଯେଉଁ ତିନୋଟି ପ୍ରସିଦ୍ଧ ନାମ, ତାହାରିଭିତରୁ ଗୋଟିଏ ଗୋଟିଏ ଅକ୍ଷର ବା ଅଂଶ ଗ୍ରହଣକରିଯାଇ ଓ ତିନୋଟି ଅକ୍ଷରକୁ ମିଶାଇ, 'ସୁଭଦ୍ରା' ଶବ୍ଦ ଗଠନ କରାଯାଇଛି । ଉପରେ ଏହି କଥା ହିଁ ପ୍ରାଞ୍ଜଳଭାବରେ ବୁଝାଇ ଦିଆଯାଇଛି ।

* * *

## Verse–11

**स्वरूपतः सुदर्शनं महायुधं सुदर्शनं**
**कुरुष्व भक्त ! दर्शनं हिताय ते प्रयत्नतः ।**
**वचस्करं जगत्पतेः विनाशकं हि दुर्मतेः**
**विभेदकं जगद्-रतेः नमस्करोमि भक्तितः ॥**

अन्वयः (Prose Order) :

हे भक्त ! ते (तव) हिताय, स्वरूपतः सुदर्शनं, महायुधं सुदर्शनं प्रयत्नतः) दर्शनं कुरुष्व । (चक्ररूपं तत् सुदर्शनं) जगत्पतेः (जगन्नाथस्य वचस्करं (आदेशानुसारं कर्मकारी) । पुनः (तत्) दुर्मतेः विनाशकम ।

( मनुष्याणां ) जगद्-रतेः ( सांसारिक-प्रवृत्तीनां ) विभेदकं (विनाशकारि) । (अहं तादृशं सुदर्शनं) भक्तितः (भक्तियुक्त-चित्तेन) नमस्करोमि ।

## Meaning :

Oh devotee ! Sudarsana (well-known as a disk) is naturally beautiful to look at. It is a highly potential weapon of the Lord of the universe known by that name. There-fore (oh devotee), look at him with reverence for your own benefit.

Sudarsan is ever keen on the execution of orders given by the Lord. By his grace, evil thoughts of the human mind are dispelled and the worldy attachment of the human beings is cut off. With profound regpect, I bow down before him.

ଓଡ଼ିଆରେ ଅର୍ଥ :

(ହେ ଭକ୍ତ ! ଜଗନ୍ନାଥଙ୍କ ନିକଟରେ, ରତ୍ନବେଦୀ ଉପରେ ପ୍ରଭୁଙ୍କର) ଯେଉଁ ଶକ୍ତିଶାଳୀ ଅସ୍ତ୍ର ରହିଅଛନ୍ତି, ତାଙ୍କର ନାମ ସୁଦର୍ଶନ (ଚକ୍ର) । ତାଙ୍କର ରୂପ ହିଁ ଏପରି ମନୋରମ ଯେ, ତାଙ୍କୁ ଦେଖିବା ମାତ୍ରେ ଦେଖିବା ଲୋକର ମନ ତାଙ୍କପ୍ରତି ଆକୃଷ୍ଟ ହୁଏ । ତେଣୁ (ହେ ଭକ୍ତ ! ) ନିଜର ହିତସାଧନ ନିମନ୍ତେ, ଯତ୍ନର ସହିତ ତୁମେ ତାଙ୍କୁ ଦର୍ଶନ କର ।

ସୁଦର୍ଶନ ହେଉଛନ୍ତି ଜଗତ୍‌ପତି ଜଗନ୍ନାଥଙ୍କର ଆଜ୍ଞାକାରୀ (ଜଗନ୍ନାଥ ମହାପ୍ରଭୁ ଯାହାଇଚ୍ଛା କରନ୍ତି, ସୁଦର୍ଶନ ସେହି କଥାକୁ ସଙ୍ଗେ ସଙ୍ଗେ କାର୍ଯ୍ୟକାରୀ କରନ୍ତି) । ସେ ପୁଣି ହେଉଛନ୍ତି ଦୁର୍ମତିର ବିନାଶକାରୀ ଅର୍ଥାତ୍ ଆମ ମନରେ ଯେଉଁ ମନ୍ଦଚିନ୍ତା ଜାତ-ହୋଇଥାଏ, ସୁଦର୍ଶନ ତାହାର ବିନାଶ ସାଧନ କରିଥାଆନ୍ତି । ମାୟାର ପ୍ରଭାବରେ ମନୁଷ୍ୟମାନଙ୍କର ମନରେ (ଅସାର) ସଂସାର ପ୍ରତି ଯେଉଁ ରତି ବା ଆସକ୍ତି ଜାତ ହୋଇଥାଏ, ସୁଦର୍ଶନ ତାହାର ବିଚ୍ଛେଦକ ହୋଇଥାଆନ୍ତି ଅର୍ଥାତ୍ ମନୁଷ୍ୟ ମନରେଥିବା ମାୟାମୟ ସଂସାରିକ ଆସକ୍ତିକୁ ଛିନ୍ନ କରିଦେଇ ଆଧ୍ୟାତ୍ମିକ ଚିନ୍ତା ଜାତ କରାଇଥାଆନ୍ତି । ମୁଁ ଭକ୍ତିପୂର୍ଣ୍ଣ ଚିତ୍ତରେ ତାଙ୍କୁ ନମସ୍କାର କରୁଅଛି ।

—o—

## Verse—12

**चतुर्द्दशार्द्ध–सागरा–वली–मनोरमाऽम्बरा–**
**धरा–निवासिनां परा–स्थली पुरी सुगोचरा ।**
**इहैव मे तपोवनं विधाय पाद सेवनं**
**जगत्पतेः सुपावनं प्रयातु दीन–जीवनम् ।**

अन्वयः (Prose Order) :

पुरी ('पुरी' इति प्रसिद्ध तीर्थस्थलम् नगरी च), चतुर्द्दशार्द्ध सागर-आवली-मनोरमाम्बरा-धरा निवासिनां, परा (श्रेष्ठा) स्थली (इति) सुगोचरा (सुप्रसिद्धा) ।

अतः च (पुरी धाम) मे तपोवनम् (भवतु) । (अत्र) जगत्पतेः (जगन्नाथस्य) सुपावनं पादसेवनं विधाय (कृत्वा) (मम) दीन जीवनं प्रयातु (यापितं भवतु) ।

## Meaning :

The (holy) city of Puri is the most sacred place on the face of the earth that is covered with the waters of the seven oceans (as per the Puranic descriptions), looking like a beautiful blue saree worn by the Mother Earth. The sacredness of (the pilgrim-city of) Puri is well-known (to students of Indian

# The Author

Prof. Gouri Kumar Brahma, B. A. (Andhra), M. A. (Utkal), D. Ed. (Patna), O.E.S. (I), (20th Feb, 1920) Posts held under Orissa Govt. - Reader in Oriya, Ravenshaw College, Cuttack, Secretary of the State Akademies, Deputy Director, Cultural Affairs and Tourism, Chief Editor, Orissa Oriental Texts etc. TITLES OF HONOUR (i) Utkal Vaachaspati (ii) Vaagmee Pravara (iii) Saahitya Maartanda (iv) Purusha Saraswatee (v) Kavi Kokila (vi) Mahapurusha (vii) Utkala Bhaarati etc.

Author of more than 100 books in Oriya (mostly), English, Sanskrit and Hindi, 65 books published by 1990. Eminent orator, literary critic and reputed oriental scholar. Has delivered several thousand speeches between 1940-1990 in English, Sanskrit and Oriya. Owns a big library. "President, Vishva Sanskrit Pratisthanam", (Orissa Branch).

Addressed conferences/ learned bodies/ Universities etc in Delhi, Calcatta, Bombay, Madras, Bangalore, Hyderabad, Mysore, Pondicherry, Allahabad, Vaaranasi, Guwahati, Santiniketan etc. and all the Universities and major Collages, literary bodies etc. in Orissa. Also in Moscow, Leningrad (University), Tashkent (University), Ulanbatur (Mongolia) etc.

And now, (i) Director, P. G. Coaching Centre (Oriya) Bhubaneswar (since 1978) and (ii) Prof. and Head of Dept., Tourism and Travel Management, (since 1985), Reg. College of Management, Bhubaneswar.